# ସୂଚିପତ୍ର

.

ବାକ୍ୟବାଣ

ଜିଭରେ ତୁମର ଶାଣ ଦିବାରାତି ବାକ୍ୟବାଣ
କର୍ମକ୍ଷେତ୍ରେ ଶୂନ୍ୟ କାହା ପାଇଁ ।
ଅପରେ ନିନ୍ଦିବା ହେଲା ତୁମ କାମ ଦୁଇ ବେଳା
ନିଜ ଭଲ କାମ ଗଲା କାହିଁ ।
ତୁମେ ଦେଖ ମନୁବାଦୀ ନାରୀର ବସନ ଆଦି
ଶିଶୁ ମା-ଲୁଗାକୁ ଚାହେଁ ନାହିଁ ।
ତୁମେ କର ଶତବାର ସ୍ୱଦେଶର ଜୟକାର
ବୀର ଲଢି ମରେ, କହେ ନାହିଁ । 1
ଲଳାଟେନ୍ଦୁ କବି 202409201509

## ଅନେକ କଥା

ବୀରତ୍ୱର ଏତେ ଭାଷା ସତ ହେଇ ଥିଲେ
ଦେଶରୁ ବିପଦ ଯେତେ ଟଳି ଯିବା କଥା ।

ବିଶାଳ ରତ୍ନର ସ୍ତୁପ ଜନ ପାଶେ ଥିଲେ
ବିନା ଶସ୍ୟଦାନେ ଲୋକେ ଚଳି ଯିବା କଥା ।

ଅଧା ପଛେ ଢଳୁ ଘର ବୁଲ୍‌ଡୋଜାର ତଳେ
ତା ଦେଖି ହୃଦୟ ପୂରା ଢଳି ଯିବା କଥା ।

ହିନ୍ଦୁ ମାର ମିଆଁ ମାର, ମନୁଷ୍ୟତା ମରେ,
ରକ୍ତ ଦେଖି ହୃଦୟ ତରଳି ଯିବା କଥା ।

ତୁମ ଘରେ ଲାଗୁ ଅବା ଲାଗୁ ମୋର ଘରେ
ଏ ନିଆଁରେ ନଗରଟା ଜଳି ଯିବା କଥା ।

ଲଲାଟେନ୍ଦୁ କବି 202409080708

## ପ୍ରଥମ ଦୀପ

ଆସୁ ବା ନ ଆସୁ ଫେରି ସ୍ନେହର ସଂସାରେ,
ହତାଶ ଗତାମ୍ବାରେ କେ ପ୍ରେମ ଜଗାଇଲା ।
ଉଚ୍ଛଳ ଉଦ୍‌ବେଳ ରକ୍ତ ହିଲ୍ଲୋଳ ଭିତରେ
ହତ୍ୟାର ତାଣ୍ଡବ ମଧ୍ୟେ ସ୍ତବ କେ ଗାଇଲା ।
ନିଘଞ୍ଚ ଏ ବନ ପୂର୍ଣ୍ଣ ହିଂସ୍ର ବନଚରେ,
ସେ ବନରୁ କେହି ତ ଔଷଧି ମଗାଇଲା ।
ଲିଭି ଗଲେ ଯାଉ କାଲି ଝଡ ବତାସରେ,
କେହି ତ ଅନ୍ଧାରୀ ଗ୍ରାମେ ଦୀପ ଲଗାଇଲା ॥01

ବାଣୀପୁତ୍ର ଲଲାଟେନ୍ଦୁ କବି 202409030403

## ସ୍ୱପ୍ନ-ଲଡୁ

ସ୍ବପ୍ନରେ ଖାଇଲେ ଲଡୁ ଭୋକ ମରେ ନାହିଁ
ସତଚାଳିଶ ସାଲକୁ ଧୈର୍ଯ୍ୟ ଧରେ ନାହିଁ ।
ରଜା ଦିଏ ପ୍ରତିଶ୍ରୁତି
ତେଇଶ ବର୍ଷ ବିତିଲେ ଆସିବ ଉନ୍ନତି । 1

ରାଜା ଯହିଁ ଲାଭଖୋର ପୋଖତ ବେପାରି
କି ଆଶ୍ଚର୍ଯ୍ୟ ଅଶି କୋଟି ସେ ଦେଶେ ଭିକାରୀ ।
ଭୁଲି ଜନଗଣ ହିତ
ରାଜା ଭାଳେ ଉଠୁ ଏକା ମୋର ପ୍ରିୟ ମିତ । 2

ରାଜମିତ୍ର ଉନ୍ନତିରେ ମାର କରତାଳି
ବତୀ ଜାଳ ପିଟି ତାଳ ଘଣ୍ଟ ବାଦ୍ୟ ଥାଳୀ
ବାଜୁ ଧର୍ମଭେଦ-ଗିନି
ଲକ୍ଷେ ବର୍ଷରେ ଉନ୍ନତି ହେବ ମୁମୁକିନୀ । 3

202408201100

ମନକଥା

ଗ୍ରାମେ ଗ୍ରାମେ କିଏ ଶୁଣେ ଜନମନ କଥା ।
ଆନ ଥାଇ ଶୁଣାଉଛି ତାର ନିଜ କଥା,
ଶୁଣିବାକୁ ପଛେ ତାକୁ କେହି ଚାହୁଁ ନାହଁ
ଏକା ଏକା ମନ କଥା ଚାଲିଛି ଚୋବାଇ ।
202407291519,

ବୁଢା ଗଛ

ଝଡ ଆସି ଡାଳ ପତ୍ର ପଡିଅଛି ଭାଜି
ଏ ଗଛରେ ନାହିଁ ଫଳ ଫୁଲ ବୃତ୍ତି ରାଜି ।
ମାଟି ତାଡି ଅଧା ଚେର ଦିଶୁଛି ବାହାରେ
ବୁଢା ଗଛ କହେ ମୁଁ କି କେବେ ହାରି ପାରେ !
ଲଲାଟେନ୍ଦୁ କବି

ନୀତୀଶନାଇଡୁ

ରାକ୍ଷସଟେ ଦେଖାଇଲା ସୁବର୍ଣ୍ଣକଙ୍କଣ
ନୀତୀଶନାଇଡୁ କଲେ ତା ଅନୁସରଣ ।
ସେବା ସାରି ରାକ୍ଷସକୁ ସୁନା ମାଗିବାରେ
ଖାଇଲେ କର୍ଣ୍ଣମୂଳିଆ ପାହାରେ ପାହାରେ ।
20240628

ଜନ୍ମେ ଗଧ ଘାଣ୍ଟି ହେବା ପାଇଁ
ମୁକ୍ତିକଥା ଶାସ୍ତ୍ରମତେ ପଢି ମନେରଖି;
ଜୀବଦ୍ଦଶା ଅତିଗତେ ପୁଣିଯାଏ ଠକି ।
ସ୍ମାର୍ଟ୍ ଆତ୍ମା ବୁଝିସବୁ କିଛି ବୁଝେ ନାହିଁ;
ମଲା ମାତ୍ରେ ଜନ୍ମେ ଗଧ ଘାଣ୍ଟି ହେବା ପାଇଁ ।।
2023

କାଳି ତୂଳୀ କାଗଜ

ସେପରି ବି ସବୁ ବେଳେ ଲେଖି ହୁଏନାହିଁ,
ବେଳେ ବେଳେ ବେଳ ମିଳେ କବିତାଟେ ପାଇଁ
ବେଳେବେଳେ ଲେଖିରଖେ ଧାଡିଏ ଦିଧାଡି,
ଅଧା ଲେଖିଥାଏ କେବେ ନିଦ ଆସେ ମାଡି ।1

ଗଡି ଯାଏ ଦିନ ରାତି ପ୍ରଭାତରୁ ସନ୍ଧ୍ୟା
ଜାଣି ହୁଏ ନାହିଁ ଫୁଟେ ମଲ୍ଲି ରାତ୍ରିଗନ୍ଧା ।
ଅଧା ଫୁଟି ଝଡେ କେତେ, ଦିଶେ ନାହିଁ ଦିଶା,
ତଥାପି ପାରେ ନା ମାରି ଲେଖିବାର ନିଶା । 2

ଦିଅ ମୋତେ ଦିଅ ବଳ, ଥିଲେ ଜୀବନରେ
ଶେଷ ଯାଏ ଚାଲୁ ଗାର ଲେଖନୀମୁନରେ ।
ମୁଁ ଗଲେ ଦେବ ମୋତେ ଯା ନିହାତି ସହଜ,
କାଳି ତୂଳୀ ସଙ୍ଗେ ଟିକେ ଟୁକୁରା କାଗଜ ।  3

202406261230

ଅଶଙ୍କିତ ଘଟି ଯାଇ ପାରେ

ମହାଦ୍ରୁମ ଟଳିଲେଣି ଏ ଝଡ ବର୍ଷାରେ
ଫୁଲ ଗଛ ଥିବ କି ଜୀବନେ ।
ଯେଉଁ ଆଶା ମରିଗଲା ଦାରୁଣ ଭାଷାରେ
ସ୍ୱପ୍ନରେ କି ଜାଗିବ ନୟନେ । 1

ବତାସରେ ଉଡି ଗଲା ଖଣ୍ଡ ଖଣ୍ଡ କାଠ
ନଡା କି ବିଲରେ ଥିବ ପଡି,
ଚାଟଶାଳୀ ଚାଳ ଭଙ୍ଗା କି ପଢିବ ପାଠ
ବଢି ଚାଲେ ମେଘ ଘଡ ଘଡି । 2

ଯେ ନିଆଁ ପୋଡିଲା ଲୁଗା ଅବୟବ ସାଥେ
ହୃଦୟ ବି ପୋଡି ଥାଇ ପାରେ ।
ଏକତା ଭାଙ୍ଗିଛି ରାଜା ରାଜ୍ୟେ ନିଜ ହାତେ,
ଘର କଥା ଦେଖି ନିଅ ବାରେ । 3

202408202120

.

## କିଛି ହୁଏ କିଛି ହୁଏ ନାହିଁ

ମନରେ ଅନେକ କଥା ହେଲେ ବି ଉଛୁଳ
ସବୁ କଥା କହି ହୁଏ ନାହିଁ ।
ରହିଛି ସାଗର ଗର୍ଭେ ଅସୁମାରୀ ଜଳ,
ଏତେ ଲୁଣି ପିଇ ହୁଏ ନାହିଁ । 1

ଅନ୍ଧକାରେ ଆକାଶଟା ତୋଫା ଦିଶୁ ଥାଏ
ଦିପହରେ ଚାହିଁ ହୁଏ ନାହିଁ ।
ସଂସାରେ ସରିଲେ ସୁଖ ଦୁଃଖ ଭରି ଯାଏ
ଏତେ ଦୁଃଖ ସହି ହୁଏ ନାହିଁ । 2

ନଦୀ ଜଳ ଝରି ଚାଲେ ଯୁଗ ଯୁଗ ଧରି
ଝରି ଝରି ସରି ଯାଏ ନାହିଁ ।
ଫୁଲ ଜାଣେ ସଞ୍ଜ ହେଲେ ପଡିଥିବ ମରି,
ହସେ କିନ୍ତୁ, ଡରି ଯାଏ ନାହିଁ । 3

ମନ କରେ ମହକିବି ଅତର ସମାନ
ଦେହ କିନ୍ତୁ ଜମା ବାସେ ନାହିଁ ।
ଯେତେ ଖୋଜ ହଜିଲା ସେ ଧୂଳିଖେଳ ଦିନ
ପିଲା ବେଳ ଫେରି ଆସେ ନାହିଁ । 4

ଲେଖିବାକୁ ବସେ ସିନା ଜୀବନ କାହାଣୀ
କଲମରୁ କାଳି ଝରେ ନାହିଁ ।
କେତେ ଆସେ କେତେ ଯାଏ ଉଠାଣି ଗଡାଣି
ଜୀବନର ରାସ୍ତା ସରେ ନାହିଁ । 5

202402270645

## ମନ୍ଦିରେ ହଜିଲା ଚାବି

ମନ୍ଦିରେ ହଜିଲା ଚାବି ପରିକ୍ରମଣରେ
ମନ ଯେଣୁ ଥିଲା ତୁମ ହିନ୍ଦୁ-ପଠାଣରେ ।
ଛାଡିଥିଲ ଘର ଯେଉଁ ଚୌକିଦାର ହାତେ
ସେହି ଅଛି ଚୋରଦଳ ସରଦାର ସାଥେ ।

ଭଲ ହେଲା ପାଇ ନାହଁ ସେ ପନ୍ଦର ଲକ୍ଷ
ପାଇଥିଲେ ନେଇଥାନ୍ତେ ଚୋର ସବୁ ତକ ।
ଯାହା ଗଲା ଯାଉ ଏବେ ଭଜ ଅବିରାମ
ଭକ୍ତି ଭରେ କହ ସଦା ଜୟ ଜୟ ରାମ ।

202404042344

## ଧର ତାକୁ

ଅସନା ପାଣି ଭୟରେ
ଘର ମଧ୍ୟେ ରହ ନାହିଁ ବସି
ଟିଭି ଦେଇ ଘରେ ଘରେ
ଗୋଳି ପାଣି ଯାଉଅଛି ପଶି । 1

ଗୋଳିଆ କରୁଛି ଯିଏ
ଘର ଗ୍ରାମ ବିପଣି ନଗର
ଯେତେ ବଡ ହେଉ ସିଏ
ଧରି ନେଇ ତାକୁ ବନ୍ଦୀ କର । 2

ପୁଷ୍ପୋଦ୍ୟାନ ନଷ୍ଟ କରି
ଯେ କରୁଛି ବିଷ ସଞ୍ଚରଣ
ସେହି ମାଳୀ ବେଶ ଧରି
କରୁଅଛି ତାର ନିୟନ୍ତ୍ରଣ  । 3

202301290023

## ନଭସ୍ଥ ସମ୍ଭାବନା

ଏକ ମାତ୍ର ଶବ୍ଦଗୁଣ ଅଛି ଭୂତାକାଶେ
ତାହା ପୁଣି ଏତେ କ୍ଷୀଣ ଶୁଣି ହୁଏ ନାହିଁ ।
ବୈଶ୍ୱିକ ଉତ୍ପାତ ଏକା ସେ ଦେଖେ ଉଦାସେ
ସବୁ ଶୁଣେ ସବୁ ଦେଖେ କିଛି କହେ ନାହିଁ । 1

ତାଠି ମଧ ଅଛି ବାୟୁ ଅଗ୍ନି ଜଳ ଭୂମି
ତା ଅର୍ଦ୍ଧାଂଶେ ଏ ଚାରିଙ୍କ ଅଷ୍ଟାଂଶ ଲେଖାଏ;
ସବୁ ଥାଇ ସର୍ବମୟ ଅଶ୍ରୁ ଯାଏ ଚୁମି;
ସମସ୍ତଙ୍କ ଆଖିକୁ ତା ଦେଖା ବି ନ ଯାଏ !2

ସେ ଆକାଶ ନୀଳ ନୁହେ ନୁହେ ଧଳା ନାଲି
ହୁଏ ନା ସେ ନିମିଷରେ ଛଟାଭା ରଞ୍ଜିତ;
ତୁମେ ଦେଖ ସବୁ କିଛି ମାୟାନେତ୍ରେ ଖାଲି,
ସବୁ ମିଥ୍ୟା ଇନ୍ଦ୍ରଜାଲ କପୋଳକଳ୍ପିତ । 3

ନାନା ଉପଦ୍ରବ ଆସି ହଜିଗଲା ପରି
ସଂକ୍ଷିପ୍ତ ଏ ମାନବର ଭଙ୍ଗୁର ଜୀବନେ
କେତେ କାହା କୃତି କୀର୍ତ୍ତି ଯାଏ ଅପସରି
ଅଖଣ୍ଡ ଆକାଶ ଗର୍ଭେ ଅସଂଖ୍ୟ ଭୁବନେ । 4

ନଶ୍ୱର ଏ ଚରାଚରେ ଭଙ୍ଗୁର ସାଧନା
ଭଙ୍ଗୁର ଏ ରାଗ ଦ୍ୱେଷ ଅସ୍ମିତାବିକାର;
ଅସ୍ଥିର ଧର୍ମାର୍ଥକାମମୋକ୍ଷର ଭାବନା;
ତା ମଧ୍ୟେ କରିବି ସ୍ଥିରସତ୍ୟ ଆବିଷ୍କାର ।5

L. Kabi 202210261212

ଦେୟ ପରିଶୋଧ

ଯୋଡି ଦିଅ ଗଙ୍ଗା ସହ ଗୋଦାବରୀ ଜଳ,
ଯୋଡି ଦିଅ ନର୍ମଦା କାବେରୀ;
ଗ୍ରାମେ ଗ୍ରାମେ ଦିଅ ପୁଣ୍ୟ ସଲିଳ ଉଚ୍ଛଳ,
ବେଳ ନାହିଁ, କର ନାହିଁ ଡେରି । ୧

ଅଳ୍ପ ଅଳ୍ପ ଛାଡି ଛାଡି ବିଶ୍ରାମ ପଟଳ
ଗଢି ଦିଅ ଜନପଦ ସାରା,
କ୍ଷେତ୍ରେ କ୍ଷେତ୍ରେ ରୋପି ଦିଅ ପ୍ରସୂନ ସକଳ
ଖୋଜି ଆଣ ଗୋଟି ଗୋଟି ତାରା । ୨

ବିଶ୍ରାମ ପଟଳ= rest shed;

ପ୍ରତି ଘରେ ଦେଇ ଆସ ନୀରସ ବିସାର,
ପଣସର ପତ୍ର ଏକ କଡା,
କିଏ ଜାଣେ ବେଳା କାଲି ପୂରିବ କାହାର
କାହା ଲାଗି ହେବ ପିଣ୍ଡ ବଢା । ୩

ନୀରସ ବିସାର= dry timber!; କଡା= a lot;

ନଦୀ ତୀରେ କିଏ କାଲି କରିବେ ତର୍ପଣ
ଶୋଇଥିବେ କିଏ ସେ ଜୁଇରେ,
କିଏ ତହିଁ କରୁଥିବେ ଅଶ୍ରୁ ବରଷଣ,
କିଏ କାନ୍ଦି ଲୋଟିବେ ଭୂଇଁରେ । ୪

କାଲି କଥା କିଏ ଜାଣେ ଥିବ କେ ନ ଥିବ,
ଯାଅ ନା କା ଉଧାର ବୁଡାଇ,
ରଜାଙ୍କର ପ୍ରାପ୍ୟ ସବୁ ଶୁଝି କରି ଯିବ,
କର ସେ ବି ଦେଲେଣି ବଢାଇ । ୫

ତୁମ୍ଭ ଦେଶ ନରପତି ଦରିଦ୍ର ଉଦାସ
ଦେଇ ଆସ ତାଙ୍କ ଶୁଳ୍କ ଧନ,
ଶୋଭା ପାଉ ଅଧିପଙ୍କ ନବୀନ ନିବାସ,
ଶୋଭା ପାଉ ଶିତିକଣ୍ଠ ବନ । ୬

ନବୀନ ନିବାସ= central vista not stated; ଶିତିକଣ୍ଠ= peacock;

ରାଜ୍ୟହିତେ ଚାଲିଅଛି ନରମେଧ ଯଜ୍ଞ
ସର୍ବେ ତହିଁ ଦିଅ ଆତ୍ମବଳି,
ପ୍ରଜାଶୂନ୍ୟ ହେଉ ରାଜ୍ୟ, ହେଉ ମହାରଣ୍ୟ,
ରଜାଙ୍କର ବ୍ୟୟ ଯାଉ ଚଳି । ୭

202105300315

## ଭୂମିପ୍ରାପ୍ତି

ଶୁଣ ମୋର, କୁହ ତୁମ କୁଶଳ ବାରତା,
ହେଇ ପାରେ ଏହି ଶେଷ ଦେଖା;
ଢାଳି ଦିଅ ବେଗେ ତୁମ ସକଳ ମମତା,
ପଢି ମୋର ଶ୍ରଦ୍ଧାର ଏ ଲେଖା । ୧

ତୁମେ ଜାଣ ମଥା ପାତି ଦେବତାଙ୍କ ପାଶେ
ମାଗେନା ମୁଁ କିଛି ନିଜ ପାଇଁ,
ଆଜି ତାଙ୍କୁ ଡାକୁଅଛି ସଭିଙ୍କ ସକାଶେ,
ଭିନ୍ନ କିଛି ବାଟ ଦିଶୁ ନାହିଁ । ୨

ଦେଶ ସାରା ଲାଗିଅଛି ମରଣର ନାଟ,
ଲେଖୁଛି ବା କିଏ ପଞ୍ଜିକାରେ?
ଅଚାନକ ଶୁଭୁଅଛି ରାମ ନାମ ପାଠ,
ଶବାଧାରେ ପାଖ ପଟୁଆରେ । ୩

ଅଚାନକ ଦିଶୁଅଛି କେତେ ପରିବାର
ବାକ୍ୟଶୂନ୍ୟ ସ୍ୱଜନେ ହରାଇ,
ମୃତ୍ୟୁ ମୂଳେ ଅନପେକ୍ଷା ଥିଲେ ବି କାହାର
ମୌନ କିଏ ରଖିଛି ଡରାଇ । ୪
ଅନପେକ୍ଷା= ଯତ୍ନହୀନତା, ଅବହେଳା;

ଶିକାରାନ୍ତେ ସିଂହ-ରଜା ପିଉଅଛି ଜଳ
ନିରେଖି ତା ବୀରତ୍ୱର ଛବି;
ଅଯତନେ ଜଳପୃଷ୍ଠ କରନା ସଚଳ,
ଛବି ତାର ଭାଙ୍ଗ ନାହିଁ କବି । ୫

ସିଂହ ଏକ ହିଂସ୍ର ପଶୁ କିବା ତାର ଜ୍ଞାନ,
ସେ କି ଜାଣେ ପ୍ରେମର ମହିମା,
ଛବି ଦେଖି ସୁଖେ ସିଏ କରୁ ଜଳ ପାନ,
କରୁଥାଉ କେଶର ଭଙ୍ଗିମା । ୬

ଗୃହବନ୍ଦୀ ଆମେ ବର୍ଷେ ଦୁଇ ବର୍ଷ ପରେ
ବଞ୍ଚିଥିଲେ ହେବା ଭେଟା ଭେଟି,
ବୋବାଳିବା ଅଚାନକ ଦେଖି ପରସ୍ପରେ -
ବଞ୍ଚିଛି ରେ ଆଉ ଜଣେ ଏଠି । ୭

କାଆଁ ଭାଆଁ ଥିବା କିଏ, ନ ଥିବେ ଅନେକ,
ପଡିଥିବ ବିସ୍ତୃତ କେଦାର;
ରଜାଙ୍କୁ କହିବା ଭୂମି ଆମ ନାମେ ଲେଖ,
ହେବୁ ତୁମ ବାଧ୍ୟ ପରିଚାର । ୮

202105312303

ପ୍ରଭୁଭକ୍ତି ଓ ନିର୍ଲଜ୍ଜ

ଭାଙ୍ଗ ମୋ ଘର ସଂସାର ଭାଙ୍ଗ ପରିବାର,
ସାହିଭାଇ ଜ୍ଞାତି ପ୍ରୀତି ଦିଅ ଭାଙ୍ଗିରୁଜି;
ଘର ହେଉ କାରାଗାର, ହୃଦୟ ନିଃସାର,
ତୁମ୍ଭ ପାଦେ କରୁଥିବି ଭକ୍ତି ଆଖି ବୁଜି । ୧

ପ୍ରତି ହୃଦେ ଭରି ଦିଅ ଘୃଣା, ଅପ୍ରତ୍ୟୟ,
କାହା ଲୁହ ଧାର କେହି ନ ପାରନ୍ତୁ ବୁଝି,
ପ୍ରଗାଢ ମୋ ଭକ୍ତି ମୂଳେ ନିଗୂଢ ରହସ୍ୟ
ନିର୍ଲଜ୍ଜ ବୁଝିବେ, ଆନ ନ ପାରିବେ ବୁଝି । ୨
ଅପ୍ରତ୍ୟୟ= ଅବିଶ୍ୱାସ;

ମୋ ପିଠିରେ କରିଚାଲ ଚାବୁକ୍ ପ୍ରହାର,
ତତଲା କଡାରେ କର ଜୀବନ୍ତ ଭର୍ଜନ,
ତଥାପି ମୁଁ କରୁଥିବି ତବ ଜୟକାର,
ଯମ ହସାଇଲେ ଯଥା ହସେ ପାପୀ ଜନ । ୩
ଭର୍ଜନ= ଭାଜିବା;
20220323

## ଏହି ନିଆଁ ଜଳିବାର କଥା - ଦୁଷ୍ୟନ୍ତ କୁମାର

ବୟସ ହେଲାଣି ମେରୁ, କିଛି ମଧୁ ଝରିଯିବା କଥା,
ଏ ହିମାଦ୍ରି ମସ୍ତକରୁ ଗଙ୍ଗାଟିଏ ନିଃସରିବା କଥା ।

ଆଜି ଏ ପଥର କାନ୍ଥ ପର୍ଦ୍ଦା ପରି ଚାଲିଛି ଦୋହଲି
ସର୍ତ୍ତ ଥିଲା ଷାଣୁକାରୀ ପରମ୍ପରା ଦୋହଲିବା କଥା ।

ନଗର ଡଗର ଗ୍ରାମ ଜନପଦ କାନନ କେଦାରେ
ହାତ ଦୋହଲାଇ ଶବ ଗୋଟିଗୋଟି ଚାଲୁଥିବା କଥା ।

ହଇଗୋଳ କରିବାର ଅଭିପ୍ରାୟ ନାହିଁ ମୋର ସିନା,
ଉଦ୍ୟମ - ଯାହା ବି ହେଉ ଏ ସ୍ୱରୂପ ବଦଳିବା କଥା ।

ମୋ ଛାତିରେ ଥାଉ ଅବା ଲାଗିଥାଉ ତୁମର ଛାତିରେ
ଯେ ନିଆଁ ଲିଗିଛି ତାହା ଭଲ କରି ଜଳୁଥିବା କଥା ।

Lose Translation:
ବାଣୀପୁତ୍ର 202301211711

## ବେପରୁଆ

କିଛି କଥା ନିର୍ବିଚାର କହି ଦେଇ ହୁଏ
କିଛି କିଛି କଥା ଯାଏ ରହି,
ଇସାରାରେ କେବେ କିଏ କିଛି କହି ଦିଏ,
ବାକି କିଛି ହେଇ ପାରେ ବହି ॥ ॥01

କଥା କେ କହିଛି କିଛି, କେତେ ଅଛି ବାକି,
କେତେ ସଦା ରହିବ ଅକୁହା
ଶୁଣିଅଛି କିଏ କେତେ; କେହି ନାହିଁ ସାକ୍ଷୀ
ଜୀବନଟା ଭାରି ବେପରୁଆ ॥ ॥02

ବେପରୁଆ କଲମର ବେପରୁଆ ଗାର
ଜାଣେ ନାହିଁ ପ୍ରଯତ୍ନ କି ଭୟ,
କିଏ ଜାଣେ କେତେ ଦିନ ଯିବ ଏ ପ୍ରକାର
ସରି ଯିବ କି ଭାବେ ସମୟ ॥ ॥03

ଅନ୍ଧକାରେ ଲାଗି ପାରେ - ସେ ମହାପ୍ରଳୟେ
ସ୍ମୃତି ସବୁ ଯାଇଛି କି ଚାଲି;
ପୁଣି ହେଲେ ନିଦ୍ରାଭଙ୍ଗ ନବସୂର୍ଯ୍ୟୋଦୟେ
ବେପରୁଆ ଝରି ଯିବ କାଳି ॥ ॥04

Lalatendu Kabi 202210260233

## ପ୍ରାଚୀର ପତ୍ର – ୧

ଲଗାଇ ପ୍ରାଚୀରପତ୍ର କି ଲାଭ ପାଇବି
ପଥିକ ଆଖିର ଶକ୍ତି ଯାଇଥିଲେ ସରି,
ବିଦ୍ରୋହ ନିଷଦ ଆଉ କା ଲାଗି ବାଇବି,
ମୁକ୍ତିର ଚେତନା ଯଦି ଯାଇଥାଏ ମରି । ୧

କଣ୍ଟା ଦେଖି ଫୁଲ ବୋଲି କରନ୍ତି ଚୁମ୍ବନ,
ଛୁଇଁଲେ ତ ଛୁଟୁଅଛି ରକ୍ତ ଝର ଝର,
ଅମୃତ ବୋଲି କରନ୍ତି ରକ୍ତ ଆଚମନ,
ଆତ୍ମୀୟଙ୍କ ରକ୍ତ ଦେଖି ଲାଗୁଅଛି ଡର । ୨

ତଥାପି ରହିଛି ଆଶା ନବଜାତ କେହି
ରଖିବ ନିଜର ଆଖି ଅତି ସାବଧାନେ,
କେବେ ତ କହିବ, ଆସ କଣ୍ଟା କାଢି ଦେଇ
ତୋଳିବାକୁ ଶୁଭ୍ର କଳି ଚଳିବା ସନ୍ଧାନେ । ୩

ସେ ଲାଗି ରହିଛି ବସି ମୁକ୍ତାକାଶ ତଳେ,
ଲିଭିବାକୁ ଦେଉ ନାହିଁ ପ୍ରାଚୀରଲିଖନ,
ଶିଶୁ କିଏ ବଡ ହେଇ ଆସିଯିବ କାଳେ,
କରିବ ପ୍ରାଚୀର ପୃଷ୍ଠେ ଏ ପତ୍ର ପଠନ । ୪

202103280200

## ପ୍ରାଚୀରପତ୍ର - ୨

ଝୁଲୁଛି ପ୍ରାଚୀରପତ୍ର    ଯେଉଁ କାନ୍ଥ ପରେ,
ତହିଁରେ ଶତସହସ୍ର    ପଡିଲାଣି ଫାଟ,
ତଥାପି ସେ କାଗଜଟା    କହେ ଥରେ ଥରେ,
ପଢ ଆସି ବୁକୁଫଟା    ମରଣର ପାଠ । ୫

ମାଟି ତୁମ ପାଦ ତଳୁ    ଯାଉଅଛି ଧସି
ଆଖି ଦୁଇ କେତେ ବେଳୁ    ରଖିଅଛ ବୁଜି,
ଜନପଦେ ନଦୀଜଳ    ଯାଇଅଛି ପଶି,
କଳ୍ପନା ସୌଧ କେବଳ    ଚାଲିଅଛ ସୃଜି । ୬

ନୀରବରେ ସଭ୍ୟତାର    ପଢ ଇତିହାସ
ଚକ୍ରବର୍ତ୍ତୀ ସାଜିବାର    ଅଦମ୍ୟ ପିପାସା
କି ଭାବେ ଶେଷ ଜୀବନେ    କରିଛି ନିରାଶ,
ଜଗାଇଛି ଯୁଯୁଧାନେ    ଶୂନ୍ୟତାର ଭାଷା । ୭

ଫୁଲ ତୁମ ବଗିଚାରେ    ଗୋଟେ ବୋଲି ନାହିଁ,
ଗାମଲା ବି ଅଛି କି ନା    ଦେଖୁ ନାହଁ ଥରେ,
କେତେ ଫେରିଲେଣି ସେଠି    ଚିତାଗ୍ନି ଜଳାଇ,
ସବୁ ଲେଖାଅଛି ଏଇ    ପ୍ରାଚୀର ପତରେ । ୮

ଖାଲି ସିନା କରାଇବ    ଶ୍ରୀହୀନ ବଗିଚା,
ଲଗାଇବ ପୁଣି ଫୁଲ    ବିଳାସ-ନିଶାରେ
ସଞ୍ଜ ହେଲେ ଭୂତଭୟ    ନ ଛାଡିବ ପିଛା,
ଆଉ କି ବସିବ ସେଠି    ରାତ୍ରି-ଅଭିସାରେ ?୯

202104090336

## ନିଦ୍ରିତ ନିର୍ଝର

ନିଦ୍ରିତ ନିର୍ଝର ନୀର ନୀରବ ନିଶ୍ଚଳ,
କର ନାହିଁ ଚହଲା ଚହଲି,
କେଉଁ କାଳ କାନ୍ଥ, କାଳେ କିଛି ଟଳମଳ,
କର ନାହିଁ ଦୋହଲା ଦୋହଲି ।୧

କିଛି ନିଆଁ ଥାଉ ଏଠି କୁହୁଳି କୁହୁଳି,
କିଛି କିଛି ଉଠୁଥାଉ ଧୂଆଁ,
ତୁମେ ବି ଆସିବ ଦିନେ ଏଠି ଝୁଲି ଝୁଲି,
ପରେ ପରେ ତୁମ ପିଲା ଛୁଆ । ୨

ଅନେକେ ଆସିବେ ଏଠି ଅଶ୍ରୁ ବରଷାଇ
ସ୍ମୃତି ଢାଳି ବତୀ ଜାଳିବାକୁ,
ବତାସେ ଅସ୍ତ୍ରାଏ ଆଶା ଆସିବ ଧସାଇ,
ଉଚ୍ଛ୍ୱାସର ଆସ୍ୟ କ୍ଷାଳିବାକୁ । ୩

ଯେଉଁ ଗୀତ ଗାଇ ତୁମେ ଗଲ ଥକି ଥକି
ଗ୍ରାମସ୍ଥ ତା କରିବେ ଗାୟନ,
ପକ୍ଷ ମେଲି ଅଭ୍ରପଥେ ପୁରାତନ ପକ୍ଷୀ,
ଦେଖୁଥିବ ଭୂତଳେ ଶୟନ । ୪

202104012259

## ପୂଜା

ଗଛ ହେଲା କଳ ପାଖେ,
କାହାର ସେ ନୁହେଁ କେହି
ମାଆ ପରି ସଭିଙ୍କୁ ସେ
ଭୋକିଲା କେ ଖାଇ ଦେଲା

ଫାଟି ଥିଲା ନଳ
ଦେଇ ନାହିଁ ଜଳ
ଦେଉ ଥିଲା ଛାଇ,
ସେଠୁ ଗୋଟେ ଫଳ |୧

ଅଜଣା ସେ ପିଲା କିଏ
"ନ ମରିବି ଆଜି" କହି
ସେଠି ଯିଏ ପୂଜୁଥିଲେ
କହିଲେ "ଛାଡିଲା ଧର୍ମ"

ଜାଣି ହେଲା ନାହିଁ,
ଯାଇଛି ପଳାଇ,
ପଥର ଦି ବେଳା
ମୁଖିଆ ଡକାଇ |୨

"ଜାତି ଧର୍ମ ଜଣା ନାହିଁ, ଏ କି କଥା ହେଲା,
ଦ୍ୱାର ନାହିଁ ଏନ୍‌କ୍ରୋଚ୍‌ମ୍ୟାଣ୍ଟ୍ ମନ୍ଦିରଟା ମେଲା,
ହେଇ ପାରେ ସେହି ପିଲା ପଠାଣ ଜାତିରେ
ପୂଜା ପାଠ ପୁଣ୍ୟଫଳ ସବୁ ସାରି ଦେଲା |" ୩

ଧରା ହେଲା ସେହି ପିଲା ଦିନଟେ ରାତିରେ
ଖାଇଲା ଗୋଇଠା ବିଧା ପିଠିରେ ଛାତିରେ,
ଦେବତା ଦେଖିଲେ ସବୁ ନୀରବ ନିଶ୍ଚଳ,
ପୁନଶ୍ଚ ପ୍ରତିଷ୍ଠା ହେଲା ପୁଣ୍ୟ ପାହାନ୍ତିରେ | ୪

202103290100

## ରାକ୍ଷସ

ରାକ୍ଷସଟେ ଦେଖି ଦେଖି ସ୍ଥିର ସର ଜଳ,
ଇତସ୍ତତଃ ଫିଙ୍ଗୁଅଛି ସେ ଜଳେ ଉପଳ,
ଭାଙ୍ଗିଲା କେ ବାସ ବୋଲି ଦ୍ୱନ୍ଦରତ ମୀନ,
ରାକ୍ଷସ ଖାଉଛି ଧରି କଳହେ ଦୁର୍ବଳ । ୧

କ୍ଷୁଦ୍ରମତି ରୁକ୍ଷ ଏହି ରାକ୍ଷସର ଦିନ,
ଏହି ପରି ଇନ୍ଦ୍ରଜାଲେ ପ୍ରବଞ୍ଚନେ ଲୀନ,
ମଳ ତେଜି ରମ୍ଭାବଳ ଶୁକର ଭୁଞ୍ଜେ କି ?
ପରପୀଡନେ ଦସ୍ୟୁର ଅନ୍ନ ହୁଏ ଜୀର୍ଣ୍ଣ । ୨

କର୍କଟ କଣ୍ଟିଆ ମତ୍ସ୍ୟ ଦୈତ୍ୟକୁ ନିରେଖି,
ଛକିଲେ ସେ ଜଳେ ସର୍ବେ ଗୁପ୍ତସ୍ଥଳ ଦେଖି,
ମୀନ ଖାଇବାକୁ ଦର୍ବ ପ୍ରବେଶନ୍ତେ ଛଳେ,
ସକଳେ ବିନ୍ଧିଲେ ତାର ଔଦ୍ଧତ୍ୟ ଉପେକ୍ଷି । ୩

ସହସ୍ର ଦଂଶନେ ଦୈତ୍ୟ ମଲା କଲବଲେ,
ଶଙ୍ଖଳୀ କର୍କଟ କିଛି ବ୍ୟାଳ ହାତେ ମଲେ,
ବାକି ଜଳଚରେ ସୁଖ ଫେରିଲା ସହଜ,
ଜଳଚର କୁଳେ ପ୍ରୀତି ବିରାଜିଲା ଜଳେ । ୪

(ବଙ୍ଗଭୂମି ନିର୍ବାଚନ ଥରେ ସରିଯାଉ
ଲେଖିବି କବିତା ଯାହା ବାକି ଅଛି ଆଉ ।)

202104021201

## କରୋନା ଓ ଆମେ

ମଣିଷଛୁଆରୁ ଛାତ୍ର ହେବେ ଗଧଛୁଆ,
ବହିପତ୍ର ଦିଶୁଥିବ ସବୁ ନୂଆ ନୂଆ । 01

ପାଠ ପଢାଇବା କଳା ଗୁରୁ ଯିବେ ଭୁଲି,
ସଢି ଯିବ ଥଳୀ ମଧ୍ୟେ ବହି ଝୁଲି ଝୁଲି । 02

ଦିଲ୍ଲୀରୁ ଦୌଲତାବାଦ ଧାଇଁଯିବା ଭଳି,
ସର୍ବପ୍ରାନ୍ତୁ ଆନ ପ୍ରାନ୍ତେ ନର ଯିବ ଚଳି । 03

ଏହି ଭାବ ରହିଥିବ କରୋନାଶାସନେ,
ରଜା ଥିବେ ଶିଖୀ ସାଥେ ବିଳାସବ୍ୟସନେ । 04

କେବେ ବା କରିବେ ରାଜା ମୂରଲୀ ବାଦନ
ଭାଚିତ୍ରକ କରିବ ସେ ଚିତ୍ର ବିତରଣ । 05

ପଥପ୍ରାନ୍ତେ ସଢୁଥିବ କୁଢ କୁଢ ଶବ,
ଗଳିତ ଶବରୁ ଖସୁ ଥିବ ଅବୟବ । 06

ଶବଦାହ ପରେ ଥିବ ବିବିଧ ଅଙ୍କୁଶ
ସଭା କରି ବୁଲୁଥିବେ ଶ୍ମଶାନ-ପୁରୁଷ । 07

ସଭାରୁ ବ୍ଯାପିବ ବ୍ୟାଧି ନଗରେ ଡଗରେ,
ମହୋଲ୍ଲାସେ ଥିବେ ରାଜା କଳ୍ପନା-ନଗରେ । 08

ନିରନ୍ତର ଥିବ ଦିବ୍ୟ ପ୍ରାସାଦ ନିର୍ମାଣ
ରାଜା ଗଲେ ସେ ନିବାସେ ଲଭିବେ ନିର୍ବାଣ । 09

ବିଳମ୍ବ ନ ହେବ ଭବ୍ୟ- ପ୍ରାସାଦ-ପ୍ରବେଶ
ମୁହୂର୍ତ୍ତେ ବିଳମ୍ବ ଦେବ ଭକ୍ତଜନେ କ୍ଲେଶ ।10

ଆତ୍ମୀୟ ସ୍ଵଜନ ଚାଲି- ଥିବେ ମରି ମରି,
ଚାଟୁ କରୁଥିବେ ଭକ୍ତେ ଦିବସ ଶର୍ବରୀ । 11

ଏ ଭାବେ ଦେଶର ହେବ ଅକାଳ ମରଣ,
ଶ୍ମଶାନେ କରିବେ ରାଜା ସ୍ଥାୟୀ ରାଜପଣ ।12

ଭାଚିତ୍ରକ= photographer;
202105010905

## ଛ ଖଣ୍ଡି କାଠ

ଛଖଣ୍ଡି କାଠରେ ଦିନେ ସର୍ବେ ହେବେ ବୁହା,
ତା ବୋଲି କି ଜନ ହେବେ ପଙ୍ଗୁ ଅଳସୁଆ? ୧

ଏହି କଥା ଜପି ଦେଶ ସବୁଠି ପଛୁଆ,
ମରଣକୁ ଜପି କେହି ହେବେ କି ପାଠୁଆ?
ଛୁଆରୁ ଏକଥା ଯେବେ ପଢାଇବା ମନ,
କେଉଁ ଅଧିକାରେ କଲ ଛୁଆ ସରଜନ? ୩

ଛୁଆ ବେଳୁ ଏ ଅଶୁଭ କଥା ଜପି ଜପି
ପାଠରେ କି ପିଲେ ମନ ପାରିବେ ସମର୍ପି? ୪
ଏହି ପରି ହତାଶାର ପାଠ ପଢି ପଢି,
ନିକମ୍ମା ଦେଶଟା ଅଛି ରସା ତଳେ ପଡି । ୫

ଦୟା କର ଶିଶୁଙ୍କୁ ନ ପଢାଅ ଏ ପାଠ,
ପଙ୍ଗୁ ନ ହୁଅନ୍ତୁ ଏହି ଦେଶ ସାରା ଚାଟ ।୬
ବାଲ୍ୟ କାଳୁ କାହା ମନ ଦିଅ ନାହିଁ ଭାଙ୍ଗି,
ଆଶା ଦିଅ ନୂଆ କିଛି ସରଜିବା ଲାଗି । ୭

ଦୟା କର ଭବିଷ୍ୟତ ବଂଶଧରଗଣେ,
ସଜାଅ ଧରଣୀ ନାନା ନୂଆ ଉତ୍ପାଦନେ । ୮
ଆବିଷ୍କାର-ଉତ୍ପାଦନ ହେଉ ଅହରହ,
ବଂଶଧରେ ଦିଅ ନାହିଁ ବସୁଧା ଦୁଃସହ । ୯

ଲଳାଟେନ୍ଦୁ କବି ୨୦୨୧୦୪୦୭୦୧୦୮

## ପ୍ଲାଟଫର୍ମ୍ କବିତା

ନିଶାର୍ଦ୍ଧରେ ପ୍ଲାଟଫର୍ମ ଦେଖିଛ କି ବୁଲି,
ଆଶ୍ରାହୀନ ଯାତ୍ରୀକୁଳ ନିଦ୍ରାହୀନ କୁଲି ?
ଥକା ମନେ ଦେଇଥିବ ସଂଗୀତ ଲଗାଇ
ଅଚାନକ ଚିତ୍କାରଟେ ଉଠିବ ଉଛୁଳି । ୧

ଅପୂର୍ଣ୍ଣ ମନ୍ଦିର ବୃଥା ଚାଲିଛ ଗଢାଇ
ନାହିଁ କେହି ଧର୍ମପଦ ମାରିବାକୁ ଚୂଳି ।
ସରସୀର ଜଳ ବେଗେ ଦିଅ ବଦଳାଇ,
ସେ ଜଳେ କୁବଳ ଏବେ ଯାଉଛି ମଉଳି । ୨

ବାଣୀପୁତ୍ର ୨୦୨୦୧୧୦୨୦୩୫୮

## କଣ୍ଟା ଦେଇ ନିଅ ଫୁଲ (ଜୟ କିଷାନ)
==

ଜୀବନଯାତରା ଶରଧାପସରା ତୁମେ କି ବୁଝିବ ମୂଲ?
ତୁମେ ଖଞ୍ଜିଥିଲ କୀଳା କଣ୍ଟା ଖିଲ, ଆମେ ଲଗାଉଛୁ ଫୁଲ ।୧

ଶ୍ରମେ ହେଲେ ଥକା ଲାଗିଗଲେ ରକା ଏକା କେବେ ଯାଉ ଯାଉ,
ଏଇ ମାଟି ପରେ ବିଶ୍ରମିବ ଥରେ, ଏଇଠାରେ ଫୁଲ ଥାଉ । ୨

ରାଜାର୍ହ ବସନ ବିଳାସ ବ୍ୟସନ ଭବନରେ ହେଉ ଠୁଳ,
ଆମେ ଗଲା ପରେ କେବେ ଥରେ ଥରେ ଏଠାରେ ତୋଳିବ ଫୁଲ । ୩

ବାଣୀପୁତ୍ର ୦୫-୦୨-୨୧

## ତୁମ ବୋଲେ

ତୁମ ବୋଲେ ରଖିଥିଲି ଅସୂୟା ପିଆଲା
ସେହି ବିଷ ଗଲା ମୋର ଅନ୍ନଜଳେ ମିଶି,
ଖାଇଲେ ଉଦରେ ଭାରି ହେଉଅଛି ଜ୍ୱାଳା,
ନିରାହାରେ ଅଛି ଏବେ ଯାଉଅଛି ଦିଶି ।୧

ତୁମ ବୋଲେ ବାଡ କଲି ଶାଣଦିଆ ତାର,
ବସାଇଲି କଣ୍ଟା, ମୁନ ରହିଅଛି ଉଠି;
କି ଭାବେ କରିବି ଏବେ ମୁଁ ତୁମ ଉଦ୍ଧାର,
ଆଗେଇଲେ ପାଦତଳେ କଣ୍ଟା ଯିବ ଫୁଟି । ୨

ବାଣୀପୁତ୍ର ୨୦୨୧୦୨୦୬୦୫୩୫

## ଆତ୍ମାର ଅଶ୍ୱତ୍ଥ

ଅନେକ ଅଶ୍ୱତ୍ଥ ଥରେ
ଗୋଟି ଗୋଟି ତରୁବରେ
ଏ ବନସ୍ତ ସାରା ଦେଖ ବୁଲି
ଆତ୍ମାର ପ୍ରତୀକ ଅଛି ଝୁଲି । ୧

ବଢୁଛି ସଂଖ୍ୟାରେ ନିତି
କେତେ ସ୍ନେହ କେତେ ପ୍ରୀତି
ଅଗଣିତ ଆତ୍ମାର ପ୍ରତୀକ,
ନ ଦେଖିଲେ ତୁମେ କି ପଥିକ । ୨

ପ୍ରତିଟି ଏ ମାଟି ଘଟ
କେତେ କେତେ ନିଷ୍କପଟ
କହୁଅଛି ହୃଦୟର କଥା
ଛାଡି ତଳ ଉଚ୍ଛଳ ମମତା । ୩

ମମତାର ପ୍ଲାବନେ କି
ଆସ କବି ! ବସ ଲେଖି,
ଶୁଭୁଅଛି ମୃଦୁ ଗୁଞ୍ଜରଣ,
କର ସେହି ମନ୍ତ୍ର ଉଚ୍ଚାରଣ । ୪

ଆସ ଆସ ଗ୍ରାମବାସୀ
ପ୍ରତୀକପ୍ରେମରେ ଭାସି
ଆସ ପ୍ରିୟ ନଗରସଜ୍ଜନ,
କର କିଛି ଅଶ୍ରୁବିସର୍ଜନ । ୫

ଅଶ୍ୱତ୍ଥର ବନ ପାଶେ
ବହି ଚାଲେ ମହୋଚ୍ଛ୍ୱାସେ
ଦେଖ ପୁଣ୍ୟ ଜାହ୍ନବୀର ଧାରା,
ଆତ୍ମାମୂଳେ କ୍ରନ୍ଦନର ଭାରା । ୬

କି କରିବ ଗଙ୍ଗୋଦକ
ନିର୍ଦ୍ଧନର ଶବ ତକ
କେତେ ଭାର ନେବ ପାରାବାରେ,
ରହି କାଳେ ଯିବ ସ୍ରୋତଧାରେ । ୭

ନଦୀ ଜାଣେ ବୋଧି ଶାଖେ,
ମହାବ୍ୟାଧି ମୃତ୍ୟୁ ପାଖେ
ସ୍କନ୍ଧେ ଯେତେ ଝୁଲୁଛି ଘଟକ
ଘଟପ୍ରତି ଗୋଟିଏ ମୃତକ । ୮

ନିର୍ଦ୍ଧନର ପରିଜନ
ଶବ କରି ବିସର୍ଜନ
ଅର୍ଥାଭାବେ ନ କରି ସଂସ୍କାର
ଦେଉଛନ୍ତି ଘଟେ ଫୁଲହାର । ୯

ବାଣୀପୁତ୍ର ୨୦୨୧୦୫୧୪୧୪୧୭

## ମୋ ଦେଶ

ନିଗମର କୋଳାହଳ ଯାଇଅଛି ମରି
ଶୁଭୁ ନାହିଁ ଜୀବନର ମଧୁ ଗୁଞ୍ଜରଣ
ବୃକଦଂଶ-ନିଶାଦର୍ଶୀ- ସେବିତ ଶର୍ବରୀ
ଧ୍ୱଂସସ୍ତୁପ ମରଣର କରେ ଉଦ୍ଘୋଷଣ | ୧

ବୃକଦଂଶ= କୁକ୍କୁର; ନିଶାଦର୍ଶୀ= ପେଚା;

କି ଭାବେ ଅର୍ପିଲ ଫୁଲ, ପୂଜିଲ ଦେବତା
ଦେବାଳୟେ ପ୍ରବେଶିଲା ଦୁର୍ଗନ୍ଧ ସ୍ୟନ୍ଦନ,
ଯେ ଭାବେ ଜଳାଇ ଦୀପ କଲ ଉନ୍ନତତା
ଅନ୍ଧକାରେ ହଜିଗଲା ହୋମାଗ୍ନି ହବନ | ୨

ସ୍ୟନ୍ଦନ= ରଥ, ବାୟୁ, ଜଳ, ପ୍ରବାହ;

ଅଗ୍ନି ଜଳ ବାୟୁ ଗିର ଦୁର୍ମୂଲ୍ୟ ବିଳାସ,
ଉଦରକୁ ଶସ୍ୟ ଲାଗି କାହିଁ ସଂସାଧନ?
ଦିଶୁଅଛି, ନେତ୍ର ପଛେ ନ କରୁ ବିଶ୍ୱାସ,
ମୋ ଦେଶରେ ନାହିଁ ଆଉ ମୋ ନିଜ ଶାସନ | ୩

ଗିର= (ସ୍ୱାଧୀନ) ବାକ୍ୟ, କଥା;

ଲଲାଟେନ୍ଦୁ କବି ୨୦୨୧୦୪୨୯୨୨୩୦

## ମଦ୍ୟମହିମା

======

ଧନଶୂନ୍ୟ ପ୍ରଜାକୁଳ ଜୀବିକା ହରାଇ
ବିକ୍ରି ନାହିଁ କର କାହୁଁ ଦେବ ବ୍ୟବସାୟୀ; ୧

ପାରିଧିକି ଯିବେ ରଜା ନାଗରା ବଜାଇ
ନିଖର୍ବ ସରୁଛି ତାଙ୍କ ବିମାନ ମଗାଇ | ୨

ବେତନ ଦେବାକୁ ପାଶେ ପଇସାଟେ ନାହିଁ,
ଖର୍ଚ୍ଚ ତୁଲାଉଛି ରାଜା ମାଦକ ପିଆଇ ॥ ୩

ନିଖର୍ବ= ୧୦,୦୦୦ କୋଟି ସଂଖ୍ୟା
ବାଣୀପୁତ୍ର ୨୦୨୦୦୬୦୭୧୫୪

## ଉନ୍ମାଦର ଉପଦ୍ରବ

ଆଉ କି କହିବ ମା ଗୋ ଶୋଭନ ସଂସାର,
ଥକି ତ ଗଲଣି ଦେଖି ଚୌଦିଗେ ହୁତାଶ;
ପୋଛି ଦେଖ ଆଖିରୁ ସେ ଅଶ୍ରୁ ଦୁଇ ଧାର,
ଧୂଆଁ ଧୂଆଁ ଦିଶିଲାଣି ବିବର୍ଣ୍ଣ ଆକାଶ । ୧

ଏଣ୍ଡେ ବଡ ଛୁରୀ ଆଣି ରଖିଲ ପଜାଇ
ଥରେ ଦୁଇ ଥର ନୁହେଁ ତିନି ତିନି ଥର,
ସେହି ଅସ୍ତ୍ରେ ହୁଏନା ମା କୁଟୀର ସଜାଇ,
ତା ଯୋଗେ ଅକାଳେ ବୃଥା ହାରିଲ କୁମର । ୨

କାନ୍ଦନା ମା ଧରାବକ୍ଷ ଆକୁଳେ ଫଟାଇ
ଯମରାଜ୍ଯେ କିମାଶ୍ଚର୍ଯ୍ୟଂ ପୁତ୍ର ମରିବାରେ;
ଶବ ପରେ ଏତେ ଫୁଲ ଦିଅନା ଲୋଟାଇ,
ମଞ୍ଚ ବୋଲି ପାଗଳଟା ଚଢି ଯାଇ ପାରେ ।୩

ପାଗଳର ଘର ନାହିଁ ନାହିଁ ପରିଚୟ
ଜଣା ପଡୁ ନାହିଁ ଗ୍ରାମ ତାଲୁକ ଠିକଣା,
ଜଣା ନାହିଁ ପଢାଇଲା କେଉଁ ବିଦ୍ୟାଳୟ,
ସହପାଠୀ ଗୁରୁ କିଏ କିଛି ନାହିଁ ଜଣା । ୪

କିଏ ତା ଶ୍ୱଶୁର ଶାଶୂ କିଏ ଶଳା ଶାଳୀ,
ଶାଢିଶଙ୍ଖା ଦେଇ କାଳେ ହେଇଥିଲା ବାହା;
ପିଲାଛୁଆ ନାହିଁ, ଘରେ ବଜାଇ କାହାଳୀ
ବରି ନେଲା ଭାରିଯାଠୁ ଲୁଚିବାର ରାହା । ୫

ଅନ୍ନହୀନ ବାସହୀନ ଜାଣି କେବେ ଥରେ
ଆଶ୍ରା ତାକୁ ଦେଇଥିଲେ ଏ ଗ୍ରାମ ନିବାସୀ,
ଉନ୍ମାଦନ ଯିବାରେ ତା ବଢି ତାହା ପରେ,
ଉପଦ୍ରବୀ ଏବେ ସିଏ କୁଖ୍ୟାତ ସନ୍ତ୍ରାସୀ ।୬

ମତ୍ତ ହେଇ ମଥା ତାର ବିଗିଡିଲା ବିନୁ
ଉଚ୍ଚ ସ୍ଥାନ ଖୋଜି ଖୋଜି ମାରୁଛି ଭାଷଣ,
ବଞ୍ଚି ନ ପାରିବ ସିଏ ବାହାସ୍ଫୋଟ ବିନୁ
କେହି ନ ଶୁଣନ୍ତୁ, ଜନ୍ମେ ତା 'ମନକଥନ' । ୭

ଲଲାଟେନ୍ଦୁ କବି ୨୦୨୧୦୪୩୦୧୩୦୩

ତା ପରେ

ଜନୈକା ପାଠିକାଙ୍କୁ

ଅନ୍ୟ କେବେ ମିଳୁ ଅବା ନ ମିଳୁ ଦର୍ଶନ,
ନିର୍ବାଚନ ବେଳେ ନିଶ୍ଚେ ହେବ ଆଗମନ,
ଧୈର୍ଯ୍ୟ ଧର ଭଗ୍ନୀ ରାଣୀ
ସମ୍ବାଦରେ ମନ ଦେଲେ ଆପେ ହେବ ଜାଣି ।



## ପିତାପୁତ୍ର ଓ ରାଜା

ଧାତୁର ଯଷ୍ଟି ଇସ୍ପାତ୍ ବେତଧାରୀ
ଏ ନୁହଁ ଓଡ୍ର ମଗଧୁ ରକ୍ଷାକାରୀ,
ନୁହଁ ବେଇଜିଂ ଲାହୋର୍ ଉପରେ ଭାରି,
ଇନ୍ଦ୍ରପ୍ରସ୍ଥ ରକ୍ଷୀ ସକଳେ,
ଲକ୍ଷ୍ୟରେ ଯା'ର ଅନ୍ନବିକଳେ
କିଷାନ୍ କ୍ରାନ୍ତିକାରୀ ।।
ଗର୍ବରେ ହେଜ ତ୍ୟକ୍ତୁଲଜ୍ଜ!
କିଷାନ୍-ପୁତ୍ର ରକ୍ଷୀ ବେଶରେ
କିଷାନ୍ ବକ୍ଷେ ଘନଶର୍ବରେ
ଶସ୍ତ୍ରିକା ଦେବ ମାରି ।।
କର୍ଦ୍ଦମେ ମିଶେ ଚଷାର ଘର୍ମ,
ପୁତ୍ରକୁ ଦିଶେ ଗୋଳାର ଧର୍ମ
ସିଏ - ରାଜାର ଆଜ୍ଞାକାରୀ,
ରାଜା - ବିରାଟ୍ ସ୍ୱେଚ୍ଛାଚାରୀ ।।
ବଣୀପୁତ୍ର ୨୦୨୧୦୨୦୨୧୮୧୦

## ପିତାପୁତ୍ର ଓ ରାଜା

ଧାତୁର ଯଷ୍ଟି ଇସ୍ପାତ୍ ବେତଧାରୀ
ଏ ନୁହଁ ଓଡ୍ର ମଗଧୁ ରକ୍ଷାକାରୀ,
ନୁହଁ ବେଇଜିଂ ଲାହୋର୍ ଉପରେ ଭାରି ।
ଇନ୍ଦ୍ରପ୍ରସ୍ଥ ରକ୍ଷୀ ସକଳେ,
ଲକ୍ଷ୍ୟରେ ଯା'ର ଅନ୍ନବିକଳେ
କିଷାନ୍ କ୍ରାନ୍ତିକାରୀ ।।

ଗର୍ବରେ ହେଜ ତ୍ୟକ୍ତଲଜ୍ଜ!
କିଷାନ୍-ପୁତ୍ର ରକ୍ଷୀ ବେଶରେ
କିଷାନ୍ ବକ୍ଷେ ଘନଶର୍ବରେ
ଶସ୍ତ୍ରିକା ଦେବ ମାରି ।।

କର୍ଦ୍ଦମେ ମିଶେ ଚଷାର ଘର୍ମ,
ପୁତ୍ରକୁ ଦିଶେ ଗୋଳାର ଧର୍ମ
ସିଏ - ରାଜାର ଆଜ୍ଞାକାରୀ,
ରାଜା - ବିରାଟ୍ ସ୍ୱେଚ୍ଛାଚାରୀ;
ରାଜା - ବିରାଟ୍ ସ୍ୱେଚ୍ଛାଚାରୀ,
ଭାରି - ଅଦୟ ଅତ୍ୟାଚାରୀ ।।

ବାଣୀପୁତ୍ର ୨୦୨୧୦୨୦୨୧୮୧୦

## ସ୍ମୃତି ଚିହ୍ନ

ନୂଆ ପ୍ରାଣୀଟିଏ ଗଢୁ ଅଛନ୍ତି ଈଶ୍ୱର
ମଣିଷଠୁ ଅତି ବେଶି ବଳୁଆ ଚତୁର । ୧

ପଘା ବାନ୍ଧି ତୁମକୁ ସେ ରଖିବ ଗୁହାଳେ
ଛାଟ ମାରି ଖଟାଇବ ତାର କର୍ମଶାଳେ । ୨

ନିଜ ଦରବାର ଗଢି କରିବ ଶାସନ
ମନୁଷ୍ୟଚାଷ ନିମିତ୍ତ ବିଧି ପ୍ରଣୟନ । ୩

ନରିଆଳ ନିୟୋଜି ସେ ଚରାଇବ ନରେ,
ପ୍ରାଙ୍ଗଣେ ଗିରିପର୍ବତେ ବନବନାନ୍ତରେ । ୪

ଭଙ୍ଗା ବାସନରେ ଦେବ ପିଇବାକୁ ଜଳ,
ଛେଚିବ ତା ନଗ୍ରେ ବରଜିଲେ ମୂତ୍ର ମଳ । ୫

ଅବେଳେ ଅସ୍ଥାନେ ବର୍ଜ୍ୟବସ୍ତୁ କଲେ ତ୍ୟାଗ,
ଚାବୁକରେ ତବ ପୃଷ୍ଠେ ଆଙ୍କି ଦେବ ଦାଗ । ୬

ଉଚ୍ଚ ଗଳେ ବଡିମାର କଲେ ବିବରଣୀ
ବ୍ରହ୍ମଚାପୁଡାରେ ଫଟାଇବ ସେ ଥୋମଣି । ୭

ଜମା କରି ନ ପାରିବ ଓଜର ଆପତ୍ତି
ତୁମ୍ଭେ ହେବ ସେମାନଙ୍କ ପ୍ରାଇଭେଟ୍ ସଂପତ୍ତି ।୮

କହୁଅଛି ଏବେଠାରୁ ହୁଅ ସୁନା ପିଲା,
ଅବସ୍ଥା ଅମଣିଆର କରିବ ସେ ଢିଲା । ୯

ତାଙ୍କ ରଜା ମଉସାଠୁ ବଳି କ୍ରୁର ସିନା
ଛୁଆଦିନୁ ମଉସାଙ୍କ ଅତି ଭଲ ଚିହ୍ନା । ୧୦

ତଥାପି ମଉସା ପୃଷ୍ଠେ ଥୋପି ନାଦି ନାଦି,
ଧରା ବକ୍ଷେ ଛଡାଇବ ଆଗେ ତାଙ୍କ ଗାଦି । ୧୧

ନ ହେଲେ ମଉସା ଦେଇ ଭଲ ସେବା କାମ
ସ୍ୱଳ୍ପ ମୂଲ୍ୟେ ମଉସାଙ୍କୁ କରିବ ନିଲାମ । ୧୨

ମଉସାଙ୍କ ଆସୁଅଛି ବେଗେ ବୁରା ଦିନ ।
ନବାଗତ ପୋଛିବ ମଉସା-ସ୍ମୃତି ଚିହ୍ନ । ୧୩

ବାଣୀପୁତ୍ର ଲେଖିଛନ୍ତି ଏହି ଶୂନ୍ୟ ବାଣୀ,
ଭବିଷ୍ୟ ଇତିହାସର ଅଗ୍ରୀମ କାହାଣୀ । ୧୪

20211028

.

## ଚାହିଁ ଶୋଇଥିଲେ

ଜାଣି ଶୋଇଥିଲେ କେହି ପାରେନା ଜଗେଇ
ଶ୍ରଦ୍ଧା କେବେ ଜାଗେ ନାହିଁ ଗାଳି ଦେଇ ଦେଇ;
ନିଷ୍ଫଳ କବିତାପାଠ ପଢିଲେ ଥଙ୍ଗେଇ | ୧

ମିଥ୍ୟାପ୍ରଶଂସାରେ ହୁଏ ନାହିଁ ପ୍ରୋତ୍ସାହନ;
ବିରୋଧ ଭାଷାରେ ଥାଏ ନାହିଁ ସମର୍ଥନ;
ଦେଇ ସଦା ମିଛ ଆଶା ହୁଏନା ଭଣ୍ଡେଇ | ୨

ଘଣ୍ଟ ଦୀପ ଯାଚନେ କି କରୋନା ଟଳିବ
ତୋଷାମଦ ବଚନେ କି ଶତ୍ରୁ ତରଳିବ,
ଆତ୍ମୀୟତା କାହୁଁ ହେବ ରଗେଇ ରଗେଇ | ୩

ସହି ସହି ଉତ୍ପୀଡନ ମୌନେ ଆନ ପରେ
ଗୁଣୀରେ ନ ହେବ ଗଣା ଶାସ୍ତ୍ର ଆଖ୍ୟାନରେ;
ନିଜକୁ ଆପଦ ଦିନେ ଆଣିବ ଡକାଇ | ୪

ଲଲାଟେନ୍ଦୁ କବି ୨୦୨୦୧୧୦୪୧୨୩୮

## କଙ୍କଡା

(କହନ୍ତି ଟାଣିଲେ ମୋତେ କର୍କଟର ଦଳ,
ନ ଭାବନ୍ତି କଷ୍ଟ କରି ଲେଖେ ଆଉ ଭଲ |)

.
କିଏ ସେ କଙ୍କଡା ତୁମ ଟାଣି ଦେଲା ଗୋଡ ?
ଭାବି ହେଉ ନାହିଁ କିଏ ବୋକା ଏତେ ବଡ |୧

.
କେତେ ଉଠିଥିଲ କେବେ  ମନେ ପକା ଥରେ,
ତୁମ ଗୋଡ କି ଲାଗି କେ  ଟାଣିବ ସତରେ?  ୨
.
ପରୋକ୍ଷ କହୁଛ ତୁମେ  ଅତି ବଡ କବି,
ଗୋଡ ଟଣା ପାଇଁ ବ୍ୟାପ୍ତ  ନୁହଁ ତୁମ ଛବି |  ୩
.
ଅତି ବୋକା ଥିଲେ କେହି  ଦେଇଥିବ ଟାଣି,
ଉଠିନ, ଉଠିବ ନାହିଁ  ନ ଥିବ ସେ ଜାଣି |  ୪
.
ଲେଖା କେବେ ଲେଖିଅଛ  ଉଠିବାର ପରି ?
କି ପାଇବ ଟାଣି ଧରି,  ଧରୁ ଶକ୍ତ କରି;  ୫
.
ନିଜେ ତ ଲେଖୁଛ ଯାହା  ନର୍ଦ୍ଦମାକୁ ସରି,
ତୁମ ସାଥେ ସେ ବି ଯିବ  ନର୍କେ ଅବତରି |  ୬
.
ଲଲାଟେନ୍ଦୁ କବି ୨୦୧୯୦୪୨୦୧୨୪୯

## ରଜା ହୁଅ

କହିଲା କେ "ରଜା ହୁଅ" ତୁମ୍ଭଙ୍କୁ ବଳାଇ?
ପେଞ୍ଚ ବଳେ ନ ପାରିବ   ଶାସନ ଚଳାଇ ।୧
ପେଞ୍ଚପାଞ୍ଚ ପରିହରି        ବୁଝ ଜନାକ୍ରୋଶ,
ନତୁବା ଭୋଗିବ ପରେ,  ଦେବ ନାହିଁ ଦୋଷ ।୨

## ପର ଘରେ ବୀରପଣ

=========
କିମ୍ପାଁ ବୁଢାମାଷ୍ଟ୍ରେ
କଲ ଯୁକ୍ତରାଷ୍ଟ୍ରେ
        ନିର୍ବାଚନେ ଉଲ୍ଲମ୍ଫନ?
ଜିତି ଗଲେ ତାଙ୍କ
ଦେଶେ ବାଇଡଙ୍କ
        କରିବ କି ସଂବାହନ? ୧

ଉଲ୍ଲମ୍ଫନ= କୁର୍ଦନ, କୁଦି/ଡେଇଁ ପଡିବା; ସଂବାହନ= ଆଉଁସିବା, ସାଉଁଳେଇବା;

ଆମ୍ଭ ଦେଶେ ଆସି
ଆନ ଦେଶବାସୀ
 କଲେ ଏମନ୍ତ ଦୌର୍ଜନ୍ୟ
ତୁମ୍ଭେ କି ତାହାର
ବଂଶର ଆଧାର
 ନ କରିବ ଉତ୍ପାଟନ? ୨
ଦୌର୍ଜନ୍ୟ= ଦୁର୍ଜନପଣିଆଁ; ଉତ୍ପାଟନ= ଉପାଡିବା;

ଲଲାଟେନ୍ଦୁ କବି
୨୦୨୦୧୧୦୬୦୮୫୩

## ବିଜୟମନ୍ତ୍ର

ନେତା କହିଲେ ନେତ୍ର ଫେଇ
କର୍ଣ୍ଣପୁଟେ ମନ୍ତ୍ର ଦେଇ -- ୧

ପାଖେଇ ଆସେ ନିର୍ବାଚନ,
ଧର୍ମ-ଭେଦ କର ସଘନ | ୨

ଏଣିକି ଭାଇ ଯେଣିକି ଯିବା
ଧର୍ମ-ନିଶା ଚଢାଇ ଥିବା | ୩

ସିଂହାସନ ଚଢିବା ବାଟ
ଧର୍ମ ନାମେ ମସ୍ତ ଫାଟ | ୪

ମହୀକି କରି ବୈର ଭୂଇଁ
ନିର୍ବାଚନ ଜିଣିବି ମୁହିଁ | ୫

ଦୁଇ ହାତରେ ଦଣ୍ଡା ଧରି
ରାଷ୍ଟ୍ର ଧନ ଲଣ୍ଡା କରି ୬

ଗଣବେଶରେ କରିବା ରଣ
ଶତ୍ରୁ କରି କାହାଣ ପଣ | ୭

କାହାକୁ ହେଲେ ଶତ୍ରୁ କରି
ହାଣିଲେ କିଛି ଖଣ୍ଡ ଧରି | ୮

*ଭାଗ୍ୟ ରବି ଆସିବ ଉଇଁ*
*ନିର୍ବାଚନ ଜିଣିବି ମୁହିଁ | ୯"
ଅଳ୍ପ ବେଳ, କରନା ଡେରି
ବଜାଅ ବେଗେ ଯୁଦ୍ଧଭେରୀ | ୧୦
ବିରୋଧ କେହି କରିଲେ ତାକୁ
କହିବ ତୁ ଟା ବିଦେଶୀ ଡାକୁ | ୧୧

ମସ୍ତ ବଡ ଫୌଜ୍ ଧରି
ଗର୍ଜନରେ ମୌନ କରି ୧୨

ତା ଦେହେ ଗଲେ ଶଙ୍କା ଛୁଇଁ
ନିର୍ବାଚନ ଜିଣିବି ମୁହିଁ | ୧୩

ମିଥ୍ୟା ଯେତେ ପାରିବ କହି
କହିବ ଯଥା କ୍ଷିପ୍ରା ନଈ |୧୪

ବଜ୍ରମୁଖ ସ୍ତୈନ୍ୟ ପରି
ବିଘ୍ନ ବାଧା ଛିନ୍ନ କରି ୧୫

ପାଲଟି ପୂରା ସତ୍ୟବାଦୀ
ବିରୋଧୀ ପରେ ଆରୋପ ସାଧି ୧୬

ମିଥ୍ୟା-ବାଣ ଶୃଙ୍ଖଳଟେ
ବର୍ଷି ଦେଲେ ବର୍ଣ୍ଣଛଟେ | ୧୭

ଶୂନ୍ୟଧେନୁ ଦୁଗ୍ଧ ଦୁହିଁ"
ନିର୍ବାଚନ ଜିଣିବି ମୁହିଁ | ୧୮

ଲଲାଟେନ୍ଦୁ କବି ୨୦୨୦୧୧୮୧୪୧୫

## ଫାର୍ମ-ହାଉସ୍

ସଂସାରଟା ଈଶ୍ୱରଙ୍କ ଫାର୍ମ ହାଉସ୍ ଟିଏ,
ବଂଶବୃଦ୍ଧି କରି ଏଠି ମରିବ ସଭିଏଁ । ୧

ହରିନାମ କରି କରି ଧରି ଥା ଜୀବନ;
ତେଲ ମାରି କରି ଚାଲ ପୁଣ୍ୟ ଉପାର୍ଜନ । ୨

ଟଙ୍କାତେଲକ୍ଷମତାର ଚକ୍ର ଏଠି ଘୂରେ,
ଏକା ତେଲମରା କାର୍ଯ୍ୟ ଦିଏ ସ୍ୱର୍ଗପୁରେ । ୩

ତେଲା ତେଲି ଶିଖି ଯାଅ ହାତେ ଥାଉଁ ବେଳ
ମଲା ପରେ ଆର ପାରେ ଢାଳୁଥିବ ତେଲ । ୪

ମଲେ ନବ ତେଲ ମରା ଟେକ୍ନିକେଲ ଶିକ୍ଷା
ଏଠି ଖାଲି କଡା କଡି ଏଣ୍ଟ୍ରାନ୍ସ ପରୀକ୍ଷା । ୫

ବାଣୀପୁତ୍ର ୨୦୨୦୧୧୦୮୦୩୪୪